# ଅକାଳମୃତ୍ୟୁ ନିବାରଣ ଓ ଶ୍ରୀକୃଷ୍ଣଙ୍କର

# ଚତୁର୍ମାସ୍ୟା ବ୍ରତ କଥା ।

ଶ୍ରୀ ବରଦା ପ୍ରସାଦ ଘୋଷଙ୍କ ଦ୍ୱାରା ରଚିତ

ଓ ପ୍ରଥମବାର ମୁଦ୍ରିତ ।



ଓଡ଼ିଶା ପେଟ୍ରିୟଟ୍ ପ୍ରେସରେ ମୁଦ୍ରିତ ।

Printed by B. Sarangi.

THE ORISSA PATRIOT PRESS

Mahammadia Bazar

CUTTACK

1911

ମୂଲ୍ୟ ଛଅପଇସା    ଟ ୦ ୧ ୬ ମାତ୍ର ।

ଅକାଳମୃତ୍ୟୁ ନିବାରଣ ଓ ଶ୍ରୀକୃଷ୍ଣଙ୍କର

# ଚତୁର୍ମାସ୍ୟା ବ୍ରତକଥା ।

ଶ୍ଳୋକ ।

ଯଦ୍ ଜିହ୍ୱାଗ୍ରେ ରଟତି ଶ୍ରୀନିତ୍ୟାନନ୍ଦସ୍ୟ ନାମୋ
ଯସ୍ୟ ହୃଦୟେ ସ୍ଫୁରତି ପ୍ରଭୁଗୁଣାଢ୍ୟବିଗ୍ରହଃ
ତତ୍ର ବନ୍ଧୁ ଦୂର ମାର୍ଗେ ନ ତିଷ୍ଠତି ଯମଃ
ନକଳ ପ୍ରବେଶଂ କସ୍ତେତି ଶରୀର ବିଗ୍ରହଃ

ଜୟ ଜୟ ଦେବ ଜୟ ବଲରାମ
ଦେହନ୍ତେ ଦେହ ଶ୍ରୀଚରଣେ ବିଶ୍ରାମ

ଗୀତ ।

( ଭାଗବତ ବୃତ୍ତରେ ଗାଇବ । )

ଜୟ ହେ ଦେବ ହଳଧର । ରୋହିଣୀ ଦେବୀଙ୍କ କୁମର ।୧।
ଯା ଜିହ୍ୱା ଅଗ୍ରେ ବଳରାମ । ନରକେ କରନ୍ତି ବିଶ୍ରାମ ।୨। ତାହାଙ୍କୁ
ଡରେ ଜନ୍ମୁରାଣ । ଜଳ ନ ପଶେ ତା ଦେହେଣ । ୩ ।

ଧନ୍ୟଂ ଧନ୍ୟଂ କଳିଯୁଗ ଯୁଗମଧ୍ୟେଣ ଅଗ୍ରଣୀ
ଯସ୍ମିଂ କାଳଂ ବ୍ୟମୋକ୍ଷତି ନାମନୈ ସର୍ବ ପ୍ରାଣିନଃ
ଅଦ୍ୟୋବଧି ସମାପ୍ତାର୍ଯ୍ୟ କରାଳଂ ବ୍ୟବହାରଷ୍ଟଂ
ବ୍ୟାକୁଳାଃ ସକଳାଜୀବାଃ ଉଚ୍ଚରନ୍ତି ହରଃହରଃ

ଧନ୍ୟ ରେ ଧନ୍ୟ ଯୁଗ କଳି । ସକଳ ଯୁଗେ ଶ୍ରେଷ୍ଠ ବୋଲି ।୧
କରାଳ ବ୍ୟବହାରେ ପ୍ରାଣୀ । ବ୍ୟାକୁଳେ ହରିନାମ ଗୁଣି ।୨। ସକଳ

ଜୀବ ଅନୁକ୍ଷଣେ । ଶ୍ୱାସରେ ନାମ ଉଚ୍ଚାରଣେ । ୩ । ଇହନ୍ତ
ଉତ୍ତମ ସୋପାନ । ଧନ୍ୟ ରେ କଳ ତୋତେ ଧନ୍ୟ । ୪ ।

ଈମାଶ୍ଚାର୍ଯ୍ୟଂ ଈମାଶ୍ଚାର୍ଯ୍ୟଂ କଲେଃ କର୍ମ ଚ ଭୀଷଣଂ
କର୍ମ ହୀନଂ ଜ୍ଞାନଶୂନ୍ୟଂ ନଶ୍ୟନ୍ତି କୋଟି ମାନବ
କାଳସ୍ୟ ଦୁର୍ଗତି ପନ୍ଥାନଂ ଅଶ୍ରୁପ୍ରନ୍ତ ଅବାଞ୍ଛିତଂ
ତଂ ବୃଦ୍ଧଃ ଯୁବକୋ ବାଳୋ ସର୍ବେ ତୁ ମନ୍ଦକର୍ମଣଃ

ଅଦ୍ଭୁତ କଳିର ଅଗ୍ରର । ଅକର୍ମେ ଅବିଦ୍ୟାରେ ନର । ୧ । ବ
ଯୁବା ବୃଦ୍ଧ ଅବା ବାଳ । ସର୍ବଙ୍କୁ ଗ୍ରାସି ଅଛୁ କାଳ । ୨ । କାଳକୁ
ଉଚିତ ଔଷଧ । ବ୍ୟବସ୍ଥା ଅନୁପାନେ ବୋଧ । ୩ ।

ସ୍ୱଜନସ୍ୟ ହ୍ରୀତାର୍ଥାୟ ବିନାଶାୟ ଚ ଦୁଷ୍କୃତାଂ
ବାତ୍ସଲ ପ୍ରାପ୍ୟେକମେକନ୍ତୁ ଶେଷାଂ ଗମ୍ୟରମ୍ୟକଂ
ବିଦ୍ୟାହୀନସ୍ୟମେତ୍ତ୍ର ଗ୍ରନ୍ଥଂ ଶୃଣ୍ୱନ୍ତୁ ସର୍ବକୋବିଦାଃ
ରହସ୍ୟ ପାନଭବନେ ଉତ୍କଳଃ ଚରତ୍ତ୍ୱନଃ

ସ୍ୱଜନ ହିତର ନିମିତ୍ତ । ଅକର୍ମ ବିନାଶର ଅର୍ଥ । ୧ । ବାତ୍ସଲ
ପ୍ରାପ୍ୟେ ତତ୍ତ୍ୱ ମୂର୍ଖ । ଶେଷଦେବଙ୍କ ପ୍ରୀତିପାଇଁ । ୨ । ତତ୍ତ୍ୱ ମୁଁ କହିବ
ବର୍ଣ୍ଣିନ । କୋବିଦେ ମୋ ଦୋଷ ନ ଦେନ । ୩ । ପାନ ହୀନଙ୍କ
ଧନ ସେହ । ନିର୍ମଳ ଶୋଭା ଭାବଗ୍ରାହ୍ମୀ । ୪ ।

ଦେବ ମୁଷଳୀ ନୀଲାମ୍ବର ଧରଂ
କୋଟି ଲାବଣ୍ୟ ବାଳାର୍କ ନେତ୍ରନଂ ।
ସୁନ୍ଦରଂ ଶଶୀକାନ୍ତ ସହାସ୍ୟ ରୂପଂ
ଦ୍ୱିଭୁଜଂ ନନ୍ଦସ୍ତୁତଂ ଭୁଜବୁନ୍ଦେ ।
ଗୋରକ୍ଷୈଃ ଭୂଷିତଂ ବେଣୁ ସ୍ୱସ୍ୱନଂ
ନୃତ୍ୟତି ଗାୟତି ଜୀବ ହିତାୟ ସର୍ବଦା ।
ସ୍ୱ ନିତ୍ୟାନନ୍ଦ ପଦ ପଙ୍କଜୌ ମନୋ
ନିସ୍ତପ୍ୟଂ ଚନ୍ଦ୍ରସ୍ୟ ଚୌ ଭୃମଙ୍କ ଲକ୍ଷଣଂ ।

ଦେବ ମୁରଲୀ ନୀଳାମ୍ବର । କୋଟି ବାଳାର୍କ ଅଙ୍ଗେ ଯାର । ୧ । ସୁନ୍ଦର ଗଣ୍ଡ କାନ୍ତି ରଞ୍ଜେ । ସର୍ବଦା ମଧୁହାସ୍ୟ ସଜେ । ୨ । ଗୋରଚ ଭୂଷଣରେ ପୁଣି । ଶିଙ୍ଗା ବଉଁଶୀ ସ୍ୱନ ଧ୍ୱନି । ୩ । ଜୀବର ମଙ୍ଗଳ କାରଣ । ଗାଇ ନାଚନ୍ତୁ ଅନୁକ୍ଷଣ । ୪ । ସେ ନନ୍ଦସୁତ ନୀଳାମ୍ବର । ତା ପାଦ ପଙ୍କଜେ ମୋ ଡର । ୫ । ନରଦେ କର ହେ ଭାବନ । ତାର ବିଷୟ ଅନୁକ୍ଷଣ । ୬ । ପଣ୍ଡିତେ ମୋ ଦୋଷ ନ ଘେନ । ମୁଁ ଯେ ଅଧମ ନରଜନ । ୭ ।

ଗୀତ ।

ନମଇ ଦେବ ସଙ୍କର୍ଷଣ । ଅନାଦି ପରମ କାରଣ । ଶ୍ରୀ ଗୁରୁ ଚରଣକୁ ଧ୍ୟାଇ । କଥାଏ କହୁଅଛୁ ମୁହିଁ । ଶୁଣ ସୁଜନେ ଦେଇ ମନ । ନ ହେବ ଅକାଳେ ପତନ । ପରମ ମଙ୍ଗଳ ଶ୍ରୀହରି । ତା ଗୁଣ ଯଶକୁ ଅବୋରି । ମନ ଶ୍ରବଣ ଦିଅ ଜନ । କଳି କଲୁଷ ବିନାଶନ । ୧ । ବେଦ୍ୟେ ବା ଶୁଣି ନାହିଁ ଶୁଣ । କହୁବା ଉଚିତ ପ୍ରମାଣ । ଯେତେକ ଧର୍ମ ସଂସ୍ଥାପନ । ଜୀବର ମଙ୍ଗଳ ବିଧାନ । ନାଶିବ ସକଳ କଲୁଷ । ସକଳ ପାପ ଯିବ ନାଶ । ଏ ବ୍ରତ ଅଛୁ ଏ ଯୁଗର । ଶୁଣି ବା ସର୍ବ ନାରୀ ନର । କର ହେ କୃଷ୍ଣ ପଦେ ଧ୍ୟାନ । ତା ନାମ କର ସଙ୍କୀର୍ତ୍ତନ ।। ଏ ଦେହ ସ୍ୱଭାବେ ତ୍ରିଗୁଣ । ବିଷ୍ଣୁ ମାୟାରେ ଏ ବନ୍ଧନ । ମାୟା ଯେ କାଳରୂପ ହୋଇ । ଜୀବକୁ ବନ୍ଧନରେ ଥୋଇ । ଧରଛୁ ତ୍ରିତାପ ଦଉଡ଼ି । ସଂସାର ରହୁଛୁ ଅବୋରି । ଯେ କରେ କୃଷ୍ଣ ପଦେ ମନ । ତାହାରେ ମାୟା ଉଭଇଟି । ସୁଜନ ଶୁଣ ମୋର ଗୀତ । ନ ହେବ ଅକାଳ ବ୍ୟାଧିତ । ୩ । ଲୁହୁକ ପ୍ରାୟ ଗତ ତାର । ଘୋଟିଛୁ ଅବନୀ ଉପର । ସେ କାଳରୂପୀ ଭଗବାନ । ଅଶେଷ ବ୍ୟାଧି ରୂପ ଜାଣ । ଘେରଛୁ ପ୍ରାଣୀ କଳେବର । ଏଥିକୁ ଉପାବୃତି କର । ନ ହେବ ଅକାଳ ମରଣ । କର ହେ ନାମ ସଙ୍କୀର୍ତ୍ତନ । ପୂଜା ବିଧାନ ବ୍ରତ କର । ଶୁଣିବା ସର୍ବ ନାରୀ ନର । ୪ । ଅଛୁ ଏ ସହର

ଜମ୍ଭୁଛ୍ଟ । କାଳ ଯେ ଗ୍ରାସ କରୁଅଛ୍ଟ । ବାଳକ ଯୁବା ବୃଦ୍ଧା ନାଶ । ଖାଉଛ୍ଟ ବ୍ୟାଧିରୂପ ଧର । ଏ କାଳରୂପୀ ଭଗବାନ । ସ୍ୱଜନେ କର ଏହ ଜ୍ଞାନ । ଏହାଙ୍କ ମୁଖରୁ ନିସ୍ତାର । ପାଇବା ଉପାୟେକ କର । ସଦର ବଜାର କଷ୍ଟର । ଏଥିକୁ ପ୍ରତିକାର ଏହ । । ୫ ।-ଅରତ ନାଦ ଅନୁକ୍ଷଣ । ଅକାଳେ ଜୀବର ପତନ । ଏ ସବୁ ଦେଖି ପ୍ରାଣ ମୋର । କାନ୍ଦଇ ଯହୁଁ ନିରନ୍ତର । ତହୁ ସୁଜନ ହତେ ମୁହିଁ । ବ୍ରତ ବଧାନ ରଚଲଇଁ । ଜାତ ଅଜାତ ଏଥି ନାହିଁ । ସବେ ଆଚର ବ୍ରତ ଏହ । ବ୍ରତ ପାଳବ ସର୍ବ ଜନ । ନଷ୍ଟେ ଏ କର୍ମର ପ୍ରମାଣ । ୬ । ଏ ବ୍ରତ ଯେ ଜନ କରବ । ଚତୁର ବର୍ଗଫଳ ହେବ । ବ୍ୟାଧି ନାଶିବ ତାର ଦେହ । ତ୍ରିତାପ ନ ରହବ ତହିଁ । ସର୍ବ ସମ୍ପଦ ତାର ହେବ । ଯେ ଏହ ବ୍ରତ ଆଚରବ । ମିଥୁନ ମାସ ଦଶମିର । ବାହୁଡ଼ା ବଜେ ଦାମୋଦର । ସେ ଦନଠାରୁ ବ୍ରତ କର ଗୃହମାସ ଏ ବ୍ରତ ଧର । ୭ । ଏ ବ୍ରତେ ବେଦ ବଧି ନାହିଁ । ଆରତ ବନାଶନ ଏହ । ଯେ ଅବା ସେ ଦନ ନ ପାଇ । ଦଇବେ ଯାଇଥାଇ ଭୁଲି । ଶ୍ରାବଣ ସଙ୍କ୍ରାନ୍ତି ଦନ । କରବ ଏ ବ୍ରତ ପାଳନ । ନ ପାର ଯେବେ କର୍ମ ଦୋଷ । ଉଁଆସ ପୂର୍ଣ୍ଣିମା ଦବସ । ସେ ଏକାଦଶୀ ପଞ୍ଚମୀରେ । ଦ୍ୱିତୀୟା ପଞ୍ଚମୀ ତିଥିରେ । ୮ । ବ୍ରତ ଆରମ୍ଭ ବେଦ ଧର୍ମ । ମଧ୍ୟରେ ହୋଇଲେ ଅକର୍ମ । ବେଦର ମତ ନ ଧରବ । ବ୍ରତକୁ ନଷ୍ଟ ନ କରବ । ଏ ବ୍ରତ ପରମ ମଙ୍ଗଳ । ଯେ କରେ ତାର ହେବ ଫଳ । ଏଣୁ ଏ ବ୍ରତ ନିରାଧାର । ଯେଣୁ ହତ୍ୟୋଷ ଚକ୍ରଧର । ସକଳ ବର୍ଣ୍ଣେ ଏହ ବ୍ରତ । କରବେ ନାହିଁ ବାରଣତ । ୯ । ସୂତ ତିନ ଦଣ୍ଡରୁ ଉଠିବ । ଶ୍ରୀଗୁରୁ ବୋଲଣ ରହିବ । ଏପର ଶତ ଅଷ୍ଟୋତ୍ତର । ଗୁରୁଙ୍କ ନାମକୁ ଉଚ୍ଚାର । ଗୋମୟ ସ୍ୱହସ୍ତରେ ନେଇ । ଭୂତୁଆ ମୂଳକୁ ଲିପାଇ । ଶଙ୍ଖ ଧ୍ୱନି ନିରବେ କର । ଶ୍ରୀ ନିତ୍ୟାନନ୍ଦ ନାମ ଧର । ପୁରୁଷ ନାରୀ ଏକ

ଭାବ । ସକଳେ ଏ ବ୍ରତ ପାଳବ । ୧୦ । ଏ ବ୍ରତ ପୁରୁଷ ବା ନାରୀ କରିବ ସୁମନେ ବିଚାରି । ହେଲେ ତରିବଭବ ବାରି । ସକଳେ ଯିବ ହେଲେ ତରି । ଜୟ ହେ ଦେବ ହଳଧର । ପ୍ରଲମ୍ବ ନାଶି ବଳମ୍ବର । ଜୟ ହେ ଦେବ କାମପାଳ । ତୁ ନାଥ ପରମ ମଙ୍ଗଳ । ଜୟ ହେ ଦେବ ବାସୁଦେବ । ସକଳ ଅବତାର ଠାବ । ୧୧ । ହେ ସଙ୍କର୍ଷଣ ନୀଳାମ୍ବର । ହେ ପ୍ରଭୁ ରେବତୀ ଈଶ୍ୱର । ତୁ ନାଥ ଦେବ ନାରାୟଣ । ସକଳ ମଙ୍ଗଳ କାରଣ । କେ ଅବା ଶତ ଅଷ୍ଟୋ-ତ୍ତୋର । କେ ଅବା ସହସ୍ରର ବାର । ତୁଳସୀ ସାତ ବୃକ୍ଷକର । ଚତୁର କୁଣ୍ଡ ସାତ କର । ଅଭାବେ ପାଞ୍ଚ ଅବା ଏକ । ଗୋମୟେ ମାର୍ଜ୍ଜଣ ମଣ୍ଡପ । ୧୨ । ତହୁଁ ତଳବ ନିତ୍ୟକର୍ମ । ବାହ୍ୟ ଦନ୍ତ ଧାପନ ଧର୍ମ । ଗୁହ୍ୟେ ମୃତ୍ତିକା ଦୁଇଥର । ଲିଙ୍ଗରେ ନେବ ଏକବାର । ବାମ କରରେ ଦଶବାର । ସାତ ଯେ ଉଭୟ କରର । ଦୁଇ ପାଦରେ ତିନ ତିନ । ଏରୂପେ ମୃତ୍ତିକାକୁ ଘେନ । ସୁଗନ୍ଧ ତେଲ ଅବା କେହୁ । ହରିଦ୍ରା କୁଙ୍କୁମ ଲଗାଇ । ୧୩ । ଜଳରେ ଘର୍ଷଣ ବୁଡିବ । ରାଧାକୁଣ୍ଡ ମନ୍ତ୍ର ପଢିବ । ଅଭାବେ ଗଙ୍ଗା ଯମୁନାଦ । ମନ୍ତ୍ର ଯେ ପଢ଼ି ମାର୍ଗେ ବିଧି । ଜଳରେ ବୁଡ଼ି ସ୍ନାନକରି । ଗୃହକୁ ଆସିବ ଯେ ଫେରି । ସୂର୍ଯ୍ୟଙ୍କୁ ସ୍ତବ ସ୍ତୋତ୍ର ପଢ଼ି । ପ୍ରଣମି ବେନି କରଯୋଡି । ଗୃହରେ ପ୍ରବେଶିବା ପର । ପରିଧାନ ଶୁକ୍ଳ ଅମ୍ବର । ତଡା ହରି ମନ୍ଦିର ନେଇ । ନବାକ୍ଷର ଯେ ଦେହେ ଦେଇ । ପୁଣ ତୁଳସୀ ଦେବୀ ପାଶ । ବସିବ ଶୁଦ୍ଧାସନ ବେଶ । ଉତ୍ତର ଅବା ନାମାବଳୀ । କବେ ଘେନିବ ଯତ୍ନକରି । ବୈଷ୍ଣବ ରୂପକୁ ଚିନ୍ତିବ । ଗୁରୁ ରୂପ ଯେ ମାନ-ଥିବ । ରଖିବ ବାମ ପାର୍ଶ୍ୱର । ଏହି ଭାବରେ ପୂଜାକର । ସୁବର୍ଣ୍ଣ ବର ଯେ ବରାଙ୍ଗ । ଚନ୍ଦନେ ଚର୍ଚ୍ଚିତ ସେ ଅଙ୍ଗ । ସନ୍ନ୍ୟାସ ରୂପ ହରି ହୋଇ । ସମଭାବକୁ ଛନ୍ତ ନେଇ । ୧୪ । ଜୀବର ମଙ୍ଗଳ ବିଧାନ । ସାଧନ୍ତି ଦେବ ଅନୁକ୍ଷଣ । ଏ ନାରାୟଣ ରୂପ ହରି । ପୂଜିବ ଗୁରୁଙ୍କୁ

ପଗ୍ରହ । ତାପରେ ପୂଜାର ବିଧାନ । ଯାହା ଉଚିତ ତାହା ଶୁଣ ।
ପାଞ୍ଚଟି କୁମ୍ଭ ବାରିପୂର୍ଣ୍ଣ । ଅଭିର ସିନ୍ଦୂର ଦେଇଣ । ଶ୍ରୀଫଳ ଚୂତ
ପତ୍ର ଦେଇ । ସ୍ଥାପିବ ପଞ୍ଚକୁମ୍ଭ ତହିଁ । ପ୍ରତ୍ୟହ ଜଳ ଫେରାଇବ ।
ଚୂତ ପତ୍ରାଦି ଦେଉଥିବ । ୧୬ । ଚନ୍ଦନ ପ୍ରତ୍ୟହ ଘଟରେ । ଅଭିର
ଆଉ ସିନ୍ଦୂରରେ । ପୂର୍ବ ପଞ୍ଚଗୋଟି ତା ପର । ସ୍ଥାପିବ ଏରୂପ ଅଗ୍ରର
ଶ୍ରୀ ନିତ୍ୟାନନ୍ଦ ଚଇତନ । ଅଦ୍ୱୈତ ଭିନ୍ନଘଟ ଜାଣ । ଜଳ ବା ଗଦା
ଧରି ଦୁଇ । ଏରୂପ ପାଞ୍ଚଘଟ କହୁ । ଏରୂପ ପଞ୍ଚଘଟ କରି । ପୂଜିବ
ସ୍ତ୍ରୀମନ୍ତ୍ର ଉଚ୍ଚାରି । ୧୭ । ଏରୂପ ପୂଜାର ପ୍ରମାଣ । କରିବ ନାମ ସଙ୍କୀ-
ର୍ତ୍ତନ । ନୈବେଦ୍ୟ ଅଦ୍ଦ ତହିଁ ଦେବ । ପଞ୍ଚ ଉପଚାରରେ ପୂଜିବ । ଯେ
ଅବା ଭାଗ୍ୟବନ୍ତ ପ୍ରାଣୀ । ଷୋଡ଼ଶ ଉପଚାର ଯେବେ । ପୂଜାକୁ
ଜଳରେ କରିବ । ମତ୍ସ୍ୟାଦି କେବେ ନ ଖାଇବ । ପୂଜାର ଉପଚାର
ଯାହା । ବୁଝାଇ କହୁଅଛୁ ତାହା । ୧୮ । ଆତପ ଅର୍ଣ୍ଣ ନାରିକେଳ ।
ଗୋବ ଘୃତାଦି ଫଳମୂଳ । ଅମ୍ଳ ମଧୁର ବେଶାର । ମଣ୍ଡା ଶାକର
ପିଠା କ୍ଷୀରି । ଧୂପ ଦୀପାଦି ତହିଁ ଦେଇ । ପୂଜିବ ଚୈତନ୍ୟ
ଗୋସାଇଁ । ବିହୁଷା ହେଲେ କୁଣ୍ଡକରି । ଚତୁର୍ଥ ଗୃହ ମଧ୍ୟେ ଭରି ।
ପୂର୍ବ ଉଦ୍ଦେଶ କୁଣ୍ଡପାଞ୍ଚ । ପୂଜିବ କରି ସୁସଞ୍ଚ । ୧୯ । ଆଷାଢ଼ ଶୁକ୍ଳ
ଦଶମୀରୁ । ଏବ୍ରତ କରିବ ପ୍ରଗ୍ରହ । କାର୍ତ୍ତିକ ପୂର୍ଣ୍ଣିମାର ଦିନ ।
ଘଟକୁ ଜଳେ ଭସାଇଣ । ଆନନ୍ଦ ହୋଇ ସ୍ନାନ କରି । ଶ୍ରୀକୃଷ୍ଣ ପାଦ
ହୃଦେ ଧରି । ସୁଖରେ କାଟୁଥିବ ଦିନ । ନ ହେବ ଅକାଳ ମରଣ ।
ଶୁଣ ହେ ବିଜ୍ଞାନୀ ପଣ୍ଡିତ । ସଣପୃ ଫିଠାଇ କହେତ । ୨୦ । ସନ୍ତୁ
ଷ୍ଟି ଦଣ୍ଡରୁ ଯେହୁ । ମଙ୍ଗଳା ଚରଣ ବୋଲାଇ । ତା ପରେ ପୂଜାର
ବିଧାନ । ଏକାଳ ହୋଇଲା ମଧ୍ୟାହ୍ନ । ସନ୍ଧ୍ୟା ସମୟ ପୁଣି ସେହୁ ।
ଅନ୍ନାଦି ଭୋଗ ଅଦ୍ଦ ଦେଇ । ଏମାର୍ଗେ ଯେ ଜନ ରହିବ । ଭିନ୍ନବାର
କର୍ମ କରିବ । ପ୍ରତ୍ୟହ ଭିନ୍ନବାର ହେଲା । ପ୍ରାତଃ ମଧ୍ୟାହ୍ନ ସନ୍ଧ୍ୟାବେଳା ।
ନିଶାରେ କେବେ ନ ପୂଜିବ । ପାରିଲେ କୀର୍ତ୍ତନ କରିବ । ଯାହାର

ବ୍ୟବସାୟ ଥିବ । ସେ ବେଳା ଭାଗ କରିଦେବ । ଜନଦଣ୍ଡ ଯେ
ଏକଥର । ବନ୍ଧୁଙ୍କୁ ଆରାଧନା କର । ଏପରି ନଅଦଣ୍ଡ କାଳ ।
ପୂଜିବ ଦେବ ଆଦମୂଳ । ୧୧ । ଏରୂପ ବ୍ରତକୁ ଆଚର । ଅକାଳ
ମୃତ୍ୟୁ ଉପୁଦ୍ରବ । ନଷ୍ଟୟ ହେବ ସ୍ୱଳ୍ପଜନ । ବଶ ହେବ ଇନ୍ଦ୍ରିୟ
ମାନ । ଜୀତେନ୍ଦ୍ରୀ ହୋଇ କର ବ୍ରତ । ନୋହିଲେ ହେବ
ବିପରୀତ । ଅହିଂସା ଜିତେନ୍ଦ୍ରିୟ ପଣ । କରେ ଯେ ଏ ବ୍ରତ
ପାଳଣ । ତାହାର ସର୍ବ ପୂର୍ଣ୍ଣ ହୋଇ । ଅକାଳେ ମୃତ୍ୟୁ ଘଟେ
ନାହିଁ । ୧୨ । ଶ୍ରାବଣେ ଶାକ ନ ଖାଇବ । ଭାଦ୍ରବେ ଦଧି ନ
ଛୁଇଁବ । ଆଶ୍ୱିନେ ନଖାଇବ ଖୀର । ଏହି ପାଳନା ଏ ବ୍ରତର ।
କାର୍ତ୍ତିକେ ସର୍ବ ଦ୍ରବ୍ୟ ନେଇ । ନୈବେଦ୍ୟ ଅନ୍ନପୂର୍ଣ୍ଣା ଦେଇ । ପୂଜିବ
ନାଭ୍ୟାବନ ହର । ଏ ଚତୁର୍ମାସ ବ୍ରତ କର । ନ ହେବ ଅକାଳ
ନିଧନ । ନଷ୍ଟପ୍ରୟ ଶୁଣ ସାଧୁଜନ । ୧୩ । ସ୍ୱଜନେ ଏହି ବ୍ରତକଥା ।
ନାମ ବନ୍ଧୁ ଘଟ ବ୍ୟବସ୍ଥା । ଦ୍ୱିଜନେ ଏହି ବର୍ଷେ ମାତ । କାଳକୁ
କର ହେ ଆଘାତ । ରିପୁ ଦମନ ବଳେ ହେବ । ଶରୀର ନିରୋଗୀ
ହୋଇବ । ଇନ୍ଦ୍ର ଯେ ବରଷିବ ଜଳ । କେବେହେଁ ନାହିଁ ଅମଙ୍ଗଳ
ଏବ୍ରତ କର ନାଶ ଭୟ । ଶ୍ରୀକୃଷ୍ଣ ନାମ ଯେ ଅଭୟ । ସେ ନାମେ
କର ହେ ବିଶ୍ୱାସ । ସକଳ ଭୟ ଯିବନାଶ । ୧୪ । ସିଦ୍ଧ ବାରଙ୍ଗ
ପୂର୍ଣ୍ଣ ଗ୍ରାମ । ଶ୍ରୀ ଜଗନ୍ନାଥଙ୍କ ଆଶ୍ରମ । ସେହି ଗ୍ରାମରେ ମୋର ଘର ।
ମୁଁ ସ୍ଥିର ସନାତନ ନର । ସୁଜନ ଜନ ହିତପାଇ । ଏବ୍ରତ କର
ସର୍ବେ ଭାଇ । ନହେବ ଅକାଳ ମରଣ । ଯୋଗ ବଚନ ଏ ପ୍ରମାଣ ।
କହଇ ଶ୍ରୀ ବରଦା ଘୋଷ । ଏକଥା ଶାସ୍ତ୍ରର ଆଦେଶ । ୧୫ ।

ଦ୍ୱିତୀୟ ଖଣ୍ଡ ।

ଅନ୍ତର ବୃତ୍ତାନ୍ତ ବ୍ରତର । ଶୁଣ ସକଳ ଜ୍ଞାନୀ ନର । ୧ । ଯେ
ଅବା ଆଷାଢ଼ ମାସର । ନକଲେ ଏ ବ୍ରତ ଆରମ୍ଭ । ୨ । ଶ୍ରାବଣେ
ଭାଦବେ ଆଚର । ନୋହିଲେ କନ୍ୟାମାସେ କର । ୩ । ଅଶ୍ୱିବ ପାଇ
ଏ ବିଧାନ । ନୋହିଲେ ଆଷାଢ଼େ ପ୍ରମାଣ । ୪ । ମଙ୍ଗଳ ବିଧାନ

ପ୍ରସ୍ତୁର । ମଙ୍ଗଳ ଏ ବ୍ରତ ଅସ୍ତୁର । ୫ । ସ୍ତ୍ରୀ ପୁରୁଷ ଏହି ବ୍ରତ ।
କରିବେ ବିଧିରେ ଉଚିତ । ୬ । ଜିତେନ୍ଦ୍ରୀ ହୋଇ ବ୍ରତ କର । ମନ
ସଂଯମକୁ ବିସ୍ତୁର । ୭ । ଇନ୍ଦ୍ରିୟ କେବେହେ ନ ଚଳିବ । ଗୃହିଲେ ବ୍ରତ
ନଷ୍ଟ ହେବ । ୮ । ସ୍ୱପ୍ନରେ ନାହିଁ କିଛି ଦୋଷ । ସ୍ୱପ୍ନ ଯେ ବିକାର
ବିଶେଷ । ୯ । ବ୍ରାହ୍ମି ମୁହୂର୍ତ୍ତ ଅଟେ ଜାଣ । କରଣ ଗୁରୁ ପାଦେ ଧ୍ୟାନ
। ୧୦ । ତାପରେ ନାମ ଉଚ୍ଚସ୍ୱରେ । ଗାଇବ ଶ୍ରୀହରି ବାସରେ । ୧୧ ।
ମୃଦଙ୍ଗ ଶଙ୍ଖ ଯେ କାହାଳୀ । ଘଣ୍ଟ ମର୍ଦ୍ଦଳ ଗୀତ ତାଳି । ୧୨ । ହରି
ଶବଦ ହୁଳ ହୁଳି । ଡିରି ଡାକିବ ବନମାଳୀ । ୧୩ । ହେ ପ୍ରଭୁ କମ-
ଳା ରମଣ । ଅଦ୍ୱ ପୁରୁଷ ଭଗବାନ । ୧୪ । ତୋହର ନାମ ଯେ
ଧରଇ ତହିଁ ବା ଅମଙ୍ଗଳ କାହିଁ । ୧୫ । ସୃଷ୍ଟି ପାଳନ ସଂହାରଣ ।
ପରମ ମଙ୍ଗଳ ଯା ନାମ । ୧୬ । ଚରଣେ ନୂପୁର ମଧୁର କଟିରେ
ଶୋଭେ ପୀତାମ୍ବର । ୧୭ । ଅଙ୍ଗରେ ଶୋଭା ବନମାଳ ଓଷ୍ଠକ ହାସ୍ୟ
ଅଧ ମୂଳ । ୧୮ । କଟିବ ହୁଟି ବାହୁର ବଉଁଶୀ ଶିଖା ବେନକର ॥
ସ୍ୱଭାବେ ଗୋପାଳଙ୍କ ଜାତ ତ୍ରିଭଙ୍ଗ ଭଙ୍ଗିମା ମୂରତ । ୨୦ । ନଟ
ଆକୃତି ଭଗବାନ ରହି ଅଛନ୍ତି ଗୁପତେଣ । ୨୧ । କେବଳ ପ୍ରେମ
ମୟ ସେହି ଅନ୍ୟ ରସରେ ମିଳେ ନାହିଁ । ୨୨ । ଏ ବଡ଼ କଠିଣ
ସାଧନ । ଜାଣନ୍ତି ଏହା ମହାଜନ । ୨୩ । ଯୋଗ କର୍ମ ଜ୍ଞାନ ଉପର
ପ୍ରେମର ଅଟଇ ଏ ଘର । ୨୪ । ସୁଜନେ ଏହି ରସେ ମାତ କୃପା
କରିବ ନନ୍ଦ ସୁତ । ୨୫ । ସେ ବଡ଼ ଦୟାଳୁ ଶ୍ରୀହରି ତ୍ରୀଗୁଣାତୀତ
ବଂଶୀଧାରୀ । ୨୬ । ହଟିଅ ନାଗର କହାଇ ତାଠାରୁ ବଳି କେହି
ନାହିଁ । ୨୭ । ଯା ନାମ ପରମ ଔଷଧି । ଭବ କରିବ ବୈଦ୍ୟବିଧି । ୨୮-
ଶୁଣିଛ ଗ୍ରନ୍ଥ ରାମାୟଣ ତା ନାମ ଧରି ହନୁମାନ । ୨୯ । ସାଗର ପଡ଼ିଲ
ତ ଡେଇଁ । ରାମ ନାମକୁ ହୃଦେ ନେଇ । ୩୦ । ସୀତାଙ୍କୁ ଖୋଜି ଠାବ
କଲା । ଅନେକ ଦଇତ ମାଇଲା । ୩୧ । ସାଧିଲା ଶ୍ରୀରାମର କାର୍ଯ୍ୟ
ନାମ ସାଙ୍ଖ୍ୟାତେ ବିଷ୍ଣୁ ତେଜ । ୩୨ । ଅର୍ଜୁନ ସେହି ନାମ ଧରି

କୁରୁଙ୍କ ବଂଶ ନାଶ କରୁ । ୩୩ । ସାରଥି ପଣେ ଖଟାଇଲା । ନାମରେ
ବ୍ରାହ୍ମଣ ରଖିଲା । ୩୪ । ଅଜାମିଲ ଯେ ବିପ୍ରବର ନାମରେ ହୋଇଲା
ନିସ୍ତାର । ୩୫ । ତା ନାମ ଶ୍ରେଷ୍ଠ ସେହୁ କଲା ସମସ୍ତ ଗୁଣ ତହିଁ
ଦେଲା । ୩୬ । ଯେ ଧର୍ମ ନଥିଲାକ ପୂର୍ବେ ସେ ଧର୍ମ ଆଣିଦେଲା
ଏବେ । ୩୭ । ସୁଧାଙ୍କ ଗୁଣ ରୂପ ଧରି ଆପେ ହୋଇଲା ବ୍ରହ୍ମଋଷି ।
ଜୀବକୁ ବୋଲେ କହ ହରି । କୈତବେ ସନ୍ୟାସୀ ସେ ହରି । ୩୯ ।
ଗୌଡ଼ ଦେଶରେ ଜନ୍ମ ହେଲା ଚୈତନ୍ୟ ନାମ ବୋଲାଇଲା । ୪୦ ।
ଅନନ୍ତ ମହିମା ତାଙ୍କର ତାହାର ନାମ କର ସାର । ୪୧ । ତା ବିନ
ନାହିଁ ଅନ୍ୟଗତି । ଯାହା କରିବ ଶିରପତି । ୪୨ । ସେ ନାମ କରି
ହୋ କୀର୍ତ୍ତନ । କରି ଏ ବ୍ରତ ଆଚରଣ । ୪୩ । ବ୍ରତେ ହରି କଥା
ଶ୍ରବଣ ଅବଶ୍ୟ କରିବା ପ୍ରମାଣ । ୪୪ । ହରିବଂଶ ଯେ ଭାଗବତ
ଗୀତା ଆଦି ଯେ ବିଷ୍ଣୁ ଗ୍ରନ୍ଥ । ୪୫ । ଏ ମାନ ଅବଶ୍ୟ ପଢ଼ିବ ଚରିତ ।
ମୃତକୁ ଦେଖିବ । ୪୬ । କାର୍ତ୍ତିକ ପୂର୍ଣ୍ଣିମା ଦିବସେ । ଏ ବ୍ରତ ବଢ଼ା-
ଇବ ଶେଷେ । ୦୭ । ସାଧରେ ପୂଜା ବଢ଼ାଇବ ବ୍ରାହ୍ମଣ ବୈଷ୍ଣବେ
ପୂଜିବ । ୪୮ । ତୁଳସୀ ଘଟକୁ ରଖିବ । ପଞ୍ଚ ଘଟକୁ ଭସାଇବ । ୪୯
ବ୍ରତରେ ଏ ଗ୍ରନ୍ଥ ପଢ଼ିବ । ସକଳ କଷ୍ଟୁ ନିସ୍ତରିବ । ୫୦ ।
ସୁଜନ ହିତର ନିମନ୍ତେ । ଭାଷା ପ୍ରବନ୍ଧେ କଲି ଗୀତ । ୫୧ । କରୁଣ
ବନ୍ଦିତ ସାଧନ । ସେବଣ ଦିଜଙ୍କ ଚରଣ । ୫୨ । ଅନେକ ଶାସ୍ତ୍ରମାନ
ଭେଦ । ରଚନା କଲି ହୀନ ବୁଦ୍ଧି । ୫୩ । ଯେ ଏହା ପଢ଼ିବ
ଶୁଣିବ । ସକଳ ପାପ ନାଶ ହେବ । ୫୪ । ଶ୍ରଦ୍ଧାରେ ଯେ ଜନ
ପଢ଼ଇ । ଅପୁତ୍ରି ଦୋଷୁ ନିସ୍ତରଇ । ୫୫ । ନିତାନ୍ତ ଅଭାବରେ ଜନ ।
ଏ ଗ୍ରନ୍ଥ ପଢ଼ିଣ କୀର୍ତ୍ତନ । ୫୬ । ଶ୍ରୀ ବଳଦେବ ପାଦ ଧାଇ । ନାଚିବ
ପାଗଳ ପରାଇ । ୫୭ । ମୂଳଟି ଅଟଇ ବିଶ୍ୱାସ । ନାଶିବ ସକଳ
କଳୁଷ । ୫୮ । କହେ ବରଦା ହୀନ ମତି । ଲଭନ୍ତେ ଶ୍ରୀକୃଷ୍ଣ ଭଗତି ॥

ଇତି ଅକାଲ ମରଣ ଓ ଚତୁର୍ମାସ୍ୟ ବଧୂବ୍ରତ କଥା ସମାପ୍ତ ।